## ସ୍ୱପ୍ନସୌଧର ରାଜପୁତ୍ର-୧
## ନିଶ୍ଛନ୍ଦ କବିତାରେ

ଲେଖିଦେବି ପ୍ରେମପତ୍ରେ
ହେମ ହସ୍ତାକ୍ଷର,
ବିଦୀର୍ଣ୍ଣ ବିବର୍ଣ୍ଣ ହୃଦେ
ସୁବର୍ଣ୍ଣ ସ୍ୱାକ୍ଷର । ୧

ହସ୍ତାକ୍ଷର ଅନ୍ତରାଳେ
ବିକ୍ଷତ ଅକ୍ଷରା —
ଅକ୍ଷତ ବଲ୍ଲୁର ଘର,
ଅଦୃଶ୍ୟ ଅପ୍ସରା । ୨

ଅଦୃଶ୍ୟ ନକ୍ଷତ୍ରମାଳ
ସୁଦୃଶ୍ୟ ପ୍ରାନ୍ତର,
ନିରନ୍ତର ଭାଙ୍ଗି ଚାଲେ
ସ୍ୱପ୍ନ ଗନ୍ତାଘର । ୩

ସ୍ୱପ୍ନର ନଗରୀ ମଧ୍ୟେ
ପ୍ରୀତିର ପ୍ରତିମା,
ଲିଭି ଲିଭି ଚାଲେ ତାର
ନୟନଭଙ୍ଗିମା । ୪

ନୟନ କଜ୍ଜଳ ତଳେ
ଦୃଗ୍ଜଳ ବହଳ,
ନିଷ୍ଫଳ ପ୍ରେମପ୍ରତୀକ୍ଷା,
ଆକାଙ୍କ୍ଷା ଉଚ୍ଛଳା ୫

ଉଚ୍ଛଳ କାମନା ମୂଳେ
ଅସହ୍ୟ ବେଦନା,
ମରି ମରି ସରି ଗଲା
କ୍ଷୀଣ ସମ୍ଭାବନା ।        ୬

କ୍ଷୀଣୁ କ୍ଷୀଣତର ହେଲା
ବଞ୍ଚିବାର ନିଶା,
ଅର୍ଦ୍ଧପଥେ ପଥଚାରୀ
ହରାଇଲା ଦିଶା ।୭

ଦିଶାଦିଶାନ୍ତରେ ଘୋଟି
ଅଦିନ ବଉଦ,
ଗୋଟି ଗୋଟି ତୁଟିଗଲା
ସ୍ୱପ୍ନର ସଉଧ ।   ୮

ସ୍ୱପ୍ନସୌଧ ସିଂହାସନେ
ବିଷଣ୍ଣ ନାୟକ,
ଅଜନ ସଦନ, କେହି
ନାହିଁ ସହାୟକ ।      ୯

ନିଃସହାୟ ରାଜସୁତ,
ନିଃଶୂନ୍ୟ ନଗରୀ,
ବିବଶ ପ୍ରଦୋଷ ପ୍ରାତଃ
ଦିବସ ଶର୍ବରୀ ।  ୧୦
ବିବଶ କାନନବନ
ବିପୁଷ୍ପ ବୀଥିକା,
ବ୍ୟାକୁଳ ଯୌବନ ଖୋଜେ
ହଜିଲା ନାୟିକା। ୧୧

ହଜିଲା ନାୟିକା ତେଜି
ଦେଇଥିଲା ପ୍ରୀତି,
ଖୋଜିଲା ଆଖିରେ ଭିଜି
ରହିଗଲା ସ୍ମୃତି। ୧୨

ସ୍ମୃତିର ଶ୍ମଶାନେ ସେହି
ସୌଧକାରାଗାରେ
ରାଜପୁତ୍ର ଆର୍ଦ୍ରନେତ୍ର
ରୁଦ୍ଧ ହାହାକାରେ । ୧୩

ଲଲାଟେନ୍ଦୁ କବି

ସ୍ୱପ୍ନସୌଧର ରାଜପୁତ୍ର-୨
ନିଶ୍ଛନ୍ଦ କବିତାରେ

ହାହାକାର ଚାରିଧାର
ହର୍ଷିତା ଲୁମ୍ବିନୀ,
ହରିତ ବଲ୍ଲୀପଲ୍ଲବେ
ମଙ୍ଗଳପ୍ଲାବିନୀ । ୧୪

ଉଦ୍ବେଳ ଆଶୟ ଲାଗି
ଅଳୀକ ହ୍ଲାଦନ,
କ୍ଲେଶର ଜଳଧି ଜଳେ
ସ୍ୱଳ୍ପ ଆଶ୍ୱାସନ । ୧୫

ଆଶ୍ୱାସନେ ଉଦାସୀନ
ତରୁଣ ହୃଦୟ,
ଅନ୍ୱେଷିବ ଶାଶ୍ୱତିକ
ଅରୁଣ ଉଦୟ । ୧୬

ଅରୁଣ ଉଦୟ ଆଗୁ
ଘନ ଅନ୍ଧକାରେ
ରାଜପୁତ୍ର ଅତିକ୍ରମି
ଚଳିଲା ପ୍ରାକାରେ । ୧୭

ରାଜସୁତ ଉଦ୍ବେଳିତ
ବେଳ ଆଉ କାହିଁ?
କେ କହିବ ଏହି ରାତି
ପାହିବ କି ନାହିଁ ! ୧୮

ପାହିଲା ରଜନୀ, ହେଲା
ଅରୁଣ ଉଦୟ,
ବିକଶିତ ନବବଲ୍ଲୀ-
ପତ୍ରପୁଷ୍ପଚୟ ୧୯

ହାସ୍ୟହୀନ ଲାସ୍ୟହୀନ,
ଅସୁମାରୀ ଭୟ,
ତ୍ରିଯାମାରେ ହଜିଗଲା
ରାଜାର ତନୟ । ୨୦

ଶାକ୍ୟକୁଳ ଶୋକାକୁଳ
ରାଜ ପରିବାରେ,
ରାଜ୍ୟ ହେବ ଅରାଜକ
ରାଜା ମରିବାରେ? ।୨୧

ସ୍ତବ୍ଧ ରାଜା ଶୁଦ୍ଧୋଧନ
ପାର୍ଷଦ ଅଧୀର,
ମୌନ ମାୟାଦେବୀପୁତ୍ର
ନିରଞ୍ଜନା ତୀର | ୨୨

ଥିଲେ ଯାର ଚାରିଧାର
ସହସ୍ର ସୁନ୍ଦରୀ,
ସେହି ପୁତ୍ର ଅର୍ଦ୍ଧବସ୍ତ୍ର
ଯୋଗୀ ବେଶ ଧରି ।୨୩

ଝୁରେ ଯଶୋଧରା; ଝୁରେ
ମହା ପଜାପତି
ଦୂରେ ପୁତ୍ର, ଝୁରେ ଶୁଦ୍ଧୋ-
ଦନ ଭଗ୍ନମତି ।   ୨୪

କୁଳରତ୍ନ ଖୋଜି କାନ୍ଦେ
ରାଜପରିବାର,
ବିଶ୍ୱାତ୍ମା ଗୌତମ ହୃଦେ
ବିଶ୍ୱ-ଅଶ୍ରୁଧାର ।   ୨୫

ବ୍ୟାକୁଳ କପିଳବାସ୍ତୁ
ଆକୁଳ କ୍ରନ୍ଦନେ,
ଅସମ୍ଭୃ ଯୋଗାରୂଢ
ଅଟଳ ସାଧନେ । ୨୬

ଲଲାଟେନ୍ଦୁ କବି  ୨୦୧୮୧୧୩୦୦୪୪୪

## ସୁପୁତ୍ର ସ୍ୱପ୍ନସୌଧର - ୧

*ପଥ୍ୟାବକ୍ତ୍ର ଶ୍ଳୋକଚ୍ଛନ୍ଦରେ*

ଲେଖି ଦେବି ଲତାପତ୍ରେ
ସୁନାର ପ୍ରେମପତ୍ରିକା
ବିଦୀର୍ଣ୍ଣ ଚୂର୍ଣ୍ଣ ମୋ ବକ୍ଷେ
ସୁନା ସ୍ୟାହିର କର୍ଣ୍ଣିକା ।01

ସ୍ୱର୍ଣ୍ଣାଭ ଅକ୍ଷରେ କୀର୍ଣ୍ଣା
ରକ୍ତରଞ୍ଜିତ ଅକ୍ଷରା;
ଅକ୍ଷତ ସ୍ୱର୍ଣ୍ଣ-ଭୂଭାଗେ
ଅଦୃଶ୍ୟା ସ୍ୱର୍ଗ-ଅପ୍ସରା ।02
ଅକ୍ଷରା=ସ୍ୱର, ଧ୍ୱନି;

ଅଦୃଶ୍ୟ ତାରକାପୁଞ୍ଜ
ସୁଦୃଶ୍ୟା ପ୍ରାନ୍ତରେ ଦିଶା
ସର୍ବଦା ଶତଧା ସ୍ୱିନ୍ନା
ସ୍ୱପ୍ନସମ୍ମୋହନୀ ନିଶା ।03
ସ୍ୱିନ୍ନ= ଘର୍ମାକ୍ତ, କ୍ଳାନ୍ତ;

ସ୍ୱପ୍ନଦେବପୁରେ ଦଗ୍ଧ
ସୁବର୍ଣ୍ଣ ପ୍ରେମମୂର୍ତ୍ତିକା
ଲିଭି ତା ଚକ୍ଷୁକ୍ଷେ ଚାଲେ
ପ୍ରେମର ସ୍ୱର୍ଣ୍ଣ ବର୍ତ୍ତିକା ।04

ସେ ନେତ୍ରକଜ୍ଜଳେ ରବ୍ଧା
ଦୃଗ୍ଜଳସ୍ରୋତନିର୍ଝର
ନିଷ୍କଳ ପ୍ରେମରେ ଈପ୍ସା
ଆକାଙ୍କ୍ଷା ସତତୋଚ୍ଛଳ ।05
ରବ୍ଧ= ଆରମ୍ଭିତ;

ଉଚ୍ଛଳା କାମନା ମୂଳେ
ଅତି ଦୁଃସହ ବେଦନା
ମଲା ତା ଜନ୍ମଦାଗର୍ଭେ
କ୍ଷୀଣ ସମ୍ଭାବ୍ୟଭାବନା । 06
ଜନ୍ମଦାଗର୍ଭ= ମାତୃଗର୍ଭ;

କ୍ଷୀଣୁ କ୍ଷୀଣସ୍ଥିତିପ୍ରାପ୍ତ
ଜୀବନେ ରହିବା ନିଶା
ପଥାର୍ଦ୍ଧେ କ୍ଷାନ୍ତ ସେ ଯାତ୍ରୀ
ହାରିଲା ଅଗ୍ରତେ ଦିଶା । 07

ଦିଶାଦିଶାନ୍ତରେ ଘୋଟି
ଅକାଳ ଗଗନଧ୍ଵଜ
ଗୋଟି ଗୋଟି ଗଲା ଲୋଟି
ସ୍ଵପ୍ନ ଉଦ୍ୟାନପଙ୍କଜ ।08
ଗଗନଧ୍ଵଦ= ମେଘ;

ସ୍ଵପ୍ନସୌଧ ହତୋଲ୍ଲାସ
ସନ୍ନ ରିକ୍ତସହାୟକ ।
ସ୍ଵପ୍ନସିଂହାସନାରୂଢ଼
ପ୍ରହୃତାନନ୍ଦ ନାୟକ ।09
ସନ୍ନ= ବିଷନ୍ନ;

ନିଃସହାୟ ଯୁବଶ୍ରେଷ୍ଠ
ବ୍ୟାବୃତ୍ତା ଅଙ୍ଗନାପରୀ
ବିହର୍ଷ ସ୍ଥାବର ଶ୍ୟାମା
ପ୍ରାତଃ ବାସରଶର୍ବରୀ ।10

ବ୍ୟାବୃତ୍ତ= ଯେ ବାହୁଡିଛି; ସ୍ଥାବର, ଶ୍ୟାମା= ଗିରିପ୍ରାଙ୍ଗଣ;

ବିହର୍ଷ କାନନାରଣ୍ୟ
ବିପୁଷ୍ପ ଶ୍ୟାମବଲ୍ଲିକା
ଉଦଗ୍ର ଯୌବନଜ୍ୱାଳା
ଅଲବ୍ଧା ହୃଦ୍ୟନାୟିକା । 11

ଅଲବ୍ଧା ନାୟିକା ମର୍ମେ
ଥିଲା ପ୍ରୀତିର ଆହୁତି,
ସହସା ଲୁଣ୍ଠିତ ପ୍ରେମ,
ରହିଲା କେବଳ ସ୍ମୃତି । 12

ସ୍ମୃତିଶ୍ମଶାନରେ ସେହି
ଅବରୁଦ୍ଧ ସଭାସ୍ଥଳେ
ରାଜପୁତ୍ର ଭିଜାନେତ୍ର
ବ୍ୟାକୁଳେ ଶୋଚନାନଳେ ।13

Lalatendu Kabi 29222918

## ସୁପୁତ୍ର ସ୍ୱପ୍ନସୌଧର - ୨
*ପଥ୍ୟାବକ୍ତ୍ର ଶ୍ଳୋକଚ୍ଛନ୍ଦରେ*

ହାହାକାର ଚତୁଷ୍ପାର୍ଶ୍ୱେ
ଆନନ୍ଦୋଚ୍ଛଳଲୁମ୍ବିନୀ
ସୁଶ୍ୟାମ ଲତିକାପତ୍ରେ
ପୁଣ୍ୟ ମଙ୍ଗଳଦାୟିନୀ ।14

ଉଦ୍ବେଳ ଆଶୟାକାଶେ
ସ୍ୱଳ୍ପ ହ୍ଲାଦନଚନ୍ଦ୍ରିକା
ତମିସ୍ର କ୍ଲେଶ-ପୂରୀଷେ
ଆଶାର କ୍ଷୀଣବର୍ତ୍ତିକା ।15
ଆଶୟ= ହୃଦୟ;

ଆଶ୍ୱାସନେ ଉଦାସୀନ
ମନନେ ମଗ୍ନ ନନ୍ଦନ
ଅନ୍ୱେଷିବ ଅନାଦ୍ୟନ୍ତ
ତମୋନାଶ-ବିରୋଚନ । 16
ବିରୋଚନ= ସୂର୍ଯ୍ୟ;

ବିରୋଚନ ନ ଆସନ୍ତେ
ଘନ ତାମସ ଅଙ୍ଗନେ
ପ୍ରାଚୀର ଉତ୍କ୍ରମି ସ୍କନ୍ଦ
ରତ୍ନ ଅଜ୍ଞାତ ଏଷଣେ । 17
ଉତ୍କ୍ରମଣ= ଅତିକ୍ରମଣ;

ରାଜପୁତ୍ର ସମୁଦ୍‌ବିଗ୍ନ
ସମୟ କ୍ଷିପ୍ର ଚଞ୍ଚଳ
ସତେ କି ପାହି ଏ ରାତ୍ରୀ
ହେବ ଉଜ୍ଜ୍ୱଳ ଭୂତଳ । 18

ପାହିଲା ସେ ଅମା ରାତ୍ରୀ
ହେଲା ପଦ୍ମାସନୋଦୟ
ଦୋଳିଲା ମଞ୍ଜରୀ ବଲ୍ଲୀ
ପତ୍ର ପୁଷ୍ପ ସମୁଚ୍ଚୟ । 19
ପଦ୍ମାସନ= ସୂର୍ଯ୍ୟ;
ନାହିଁ ହାସ୍ୟ କିବା ଲାସ୍ୟ
ବିପୁଳ ତ୍ରାସ ସଂଶୟ
ନିଶାର୍ଦ୍ଧେ ହଜିଲା ଦୂରେ
ରାଜପୁତ୍ର ପୁରପ୍ରିୟ ।20

ଶୋକାର୍ତ୍ତ ଶାକ୍ୟବଂଶୀୟ
ସ୍ତବ୍ଧ ରାଜନ୍ୟମଣ୍ଡଳୀ
ରାଜ୍ୟ ହେବ ବିପର୍ଯ୍ୟସ୍ତ
ଏ ରାଜା ପଡିଲେ ଟଳି ।21

ରାଜା ଶୁଦ୍ଧୋଦନ ସ୍ତବ୍ଧ
ବାକ୍‌ଶୂନ୍ୟ ଦାସସେବିକା
ନିରଞ୍ଜନା ତଟେ ପୁତ୍ର-
କରେ ଆଶାର ବର୍ତ୍ତିକା ।22

ଚତୁଷ୍ପାର୍ଶ୍ୱେ ଥିଲେ ଯାର
ସହସ୍ର ସ୍ୱର୍ଗସୁନ୍ଦରୀ
ଅର୍ଦ୍ଧବସ୍ତ୍ରକ ସେ ପୁତ୍ର
ଯୋଗସନ୍ନ୍ୟାସ ଆଚରି ।23

ମହାପଜାପତି ସ୍ତବ୍ଧା
ତଥା ଭାର୍ଯ୍ୟା ଯଶୋଧରା ।
ଦୂରେ ପୁତ୍ର ମହାରଣ୍ୟେ
ନେତ୍ରାଗ୍ରେ ଧାବିନୀ ଖରା ।24
ଖରା= ବେଗବତୀ;

କୁଳରତ୍ନର ବିଚ୍ଛେଦେ
ସର୍ବେ ବ୍ୟାକୁଳ ରାଜ୍ୟରେ
ବିଶ୍ୱାତ୍ମା ନେତ୍ରଜେ ସାରା
ବିଶ୍ୱ ଲୋତକ ନିର୍ଝରେ । 25

କପିଳବାସ୍ତୁ ବ୍ୟାକୁଳ
ଜନପଦେ ହାହା ସ୍ୱନ ।
ଦୃଢ ତପସ୍ୟା-ନିଶ୍ଚଳ
ବିଜନ ସତ୍ତ୍ୱେ ଗୌତମ । 26

(ପଦ 26ରେ ଛନ୍ଦ: ପ୍ରୀଡା, ନଗଣ ମଗଣ ଲଲ)

Lalatendu Kabi  29230704
+ 91 7978 680 712